# ଉପହାର ପତ୍ର ।

ପରମ କଲ୍ୟାଣାସ୍ପଦ ଶ୍ରୀମାନ ଶ୍ରୀବ୍ରଜବନ୍ଧୁ ମହାପାତ୍ର
ଜମିଦାର ମହାଶୟ କରକମଳେଷୁ ।
[ ବୈଦେଶ୍ୱର, ବାଙ୍କୀ, କଟକ । ]

ଆଶୀର୍ବ୍ବାଦ ବିଜ୍ଞାପନ ।

ଅୟୁଷ୍ମନ୍! ଯୌବନ ଏବଂ ଧନ - ସମ୍ପତ୍ତି ପ୍ରତ୍ୟେକେ ଯେପରି କଲ୍ୟାଣପ୍ରଦ, ସେହିପରି ବିବିଧ ଅନର୍ଥର କାରଣ ; ଅପରିଣାମଦର୍ଶୀ ଯୁବକମାନେ କୁଚରିତ୍ର ଏବଂ ଚାଟୁକାରମାନଙ୍କଦ୍ୱାରା ସର୍ବ୍ବଦା ଅବେଷ୍ଟିତ ହୋଇ ରହିଲେ ପରେ ଦାରୁଣ ଦୁର୍ଦ୍ଦଶା ଭୋଗକରିଥାନ୍ତି । ଯେଉଁମାନେ ଧନୀ ଓ ଯୁବକ ହୋଇମଧ୍ୟ ଉକ୍ତ ଉଭୟବିଧ ଦୋଷରୁ ମୁକ୍ତ ସେମାନେ ପ୍ରକୃତ ମନୁଷ୍ୟପଦ ବାଚ୍ୟ । କବି ଯଥାର୍ଥ କହିଅଛନ୍ତି —

ଧନିନୋଽପି ନିରୁନ୍ମାଦା ଯୁବାନୋଽପି ନଚଞ୍ଚଳାଃ
ପ୍ରଭବୋଽପ୍ୟପ୍ରମତ୍ତାସ୍ତେ ମହାମହିମଶାଳିନଃ ।

ତୁମ୍ଭେ ଚରିତ୍ରର ବିଶୁଦ୍ଧତାରକ୍ଷା, ସାତ୍ତ୍ୱିକ ଭାବରେ କର୍ତ୍ତବ୍ୟ ପାଳନ, ଦେଶପ୍ରତି ପ୍ରୀତିଭାବ

ପୋଷଣ, ଗୁରୁଜନମାନଙ୍କ ପ୍ରତି ଭକ୍ତି ପ୍ରଦର୍ଶନ ଏବଂ ନାନାବିଧ ସଦ୍‌ଗ୍ରନ୍ଥ ସଂଗ୍ରହ ଓ ପାଠକରି ଜ୍ଞାନାର୍ଜ୍ଜନ ବିଦ୍ୟାବିଷୟରେ ସଦା ଅନୁରକ୍ତ । ଏହିସବୁ କାରଣରୁ ମୁଁ ପରମ ପ୍ରୀତହୋଇ ଏହି "ହରି ମନ୍ଦିର" ଗ୍ରନ୍ଥି ତୁମ୍ଭ ନାମରେ ଉତ୍ସର୍ଗ କଲି । ଆଶାକରେ ଏହାକୁ ସଶ୍ରଦ୍ଧ ଚିତ୍ତରେ ଗ୍ରହଣ କରିବ ।

ଶୁଭଚିନ୍ତକ

ଶ୍ରୀନୀଳମଣି ବିଦ୍ୟାରତ୍ନ

# ହରିମନ୍ଦିର ।

ଦାନ୍ତ୍ର ଭକ୍ତ୍ୟର୍ଥାସାକ୍ଷା ଜୀବ ନିସ୍ତାର - କାରଣୀ
ଗୃହିଣୀ ସ୍ୱଜନେ ଯତ୍ର ତତ୍ରୈବ ରମତେହରିଃ । ୧ ।

ମୂର୍ତ୍ତିମତୀ ଦାନ୍ତ ଭକ୍ତି ସମୟା ଗୃହିଣୀ
ଜଗତେ ଯେସନେ ସର୍ବଜୀବ ନିସ୍ତାରଣୀ
ଗୃହସ୍ଥ ଆଶ୍ରମ ସେହି ପୁଣ୍ୟ ନିକେତନ
ନିତ୍ୟ ବିରାଜନ୍ତି ତହିଁ ଦେବ ନାରାୟଣ । ୧ ।

ପୁଣ୍ୟବ୍ରତୋ ଗୃହସ୍ଥଶ୍ଚ ଗୃହିଣୀଚ ପତିବ୍ରତା
ପିତୃ ଭକ୍ତାଶ୍ଚ ସନ୍ତାନାସ୍ତତ୍ରୈବ ରମତେହରିଃ । ୨

ଯେଉଁଗୃହେ ଗୃହସ୍ଥ ସଦା ପୁଣ୍ୟକର୍ମ୍ମେ ରତ
ପତିମାତ୍ର ଗୃହିଣୀର ଜୀବନର ବ୍ରତ
ପିତୃଭକ୍ତ ଗୁଣବାନ ଯେଉଁଗୃହେ ସନ୍ତାନ
ସେସ୍ଥାନେ କରନ୍ତି ହରି ନିତ୍ୟ ଅଧିଷ୍ଠାନ । ୨

ଅତିଥ୍ୟଂ ଗୁରୁଭକ୍ତିଶ୍ଚ ପାତିବ୍ରତ୍ୟଂ ଦମ୍ପାର୍ଜ୍ଜବଂ
ସତ୍ୟଂ ଶୌଚଂ କ୍ଷମାଯତ୍ର ତତ୍ରୈବ ରମତେହରିଃ । ୩ ।

ସତୀତ୍ୱ ଆତିଥ୍ୟ ଦୟା, ଭକ୍ତି ଗୁରୁଜନେ
ସତ୍ୟ ଶୌଚ ସରଳତା କ୍ଷମା ଯେ ଭବନେ
ସେଗୃହ ଧର୍ମ୍ମର କ୍ଷେତ୍ର ଶାନ୍ତିର ଆଧାର
ଶ୍ରୀହରି ସେଗୃହେ ସଦା କରନ୍ତି ବିହାର । ୩

ଅରିଷଡ଼୍‌ବର୍ଗ ଦମନଂ ଦୀନୋପଗତ ରକ୍ଷଣଂ
ସର୍ବଭୂତାର୍ତ୍ତିଂ ଯତ୍ର ତତ୍ରୈବ ରମତେ ହରିଃ । ୪ ।

ଯେସବୁଜନେ ଷଡ଼୍‌ରିପୁ କରେ ପରାଜୟ
ଅଭ୍ୟାଗତ ଦୀନଜନ ଲଭନ୍ତି ଆଶ୍ରୟ
ଯହିଁ ଆସି ସର୍ବଜୀବ ଲଭନ୍ତି ଅଭୟ
ବିହରନ୍ତି ନିତ୍ୟ ତହିଁ ହରି ଦୟାମୟ । ୪ ।

ପିତାମାତା ଗୁରୁଃପତ୍ନୀ ଜ୍ଞାତୟୋ ବାନ୍ଧବାସ୍ତଥା
ଯତ୍ରୈତେ ଭତ୍ୟସନ୍ତୁଷ୍ଟା ସ୍ତତ୍ରୈବ ରମତେ ହରିଃ । ୫

ପିତା ମାତା ଗୁରୁପତ୍ନୀ ପୁଲକିତ ମନେ
ଲଭନ୍ତି ଅତୁଳତୃପ୍ତି ନିତ୍ୟ ଯେ ଭବନେ ।
ରହନ୍ତି ଆନନ୍ଦେ ଯଥା ଜ୍ଞାତି ବନ୍ଧୁଗଣ
ନିତ୍ୟ ବିହରନ୍ତି ତଥା ଦେବ ନାରାୟଣ । ୫

ମୋଦନ୍ତେ ଶିଶବୋ ଯତ୍ର ମୋଦନ୍ତେଚ ଗୃହେଽଙ୍ଗନାଃ
ତିର୍ଯ୍ୟଞ୍ଚୋପି ପ୍ରମୋଦନ୍ତେ ତତ୍ରୈବ ରମତେ ହରିଃ । ୬ ।

ଯେଭବନେ ଶିଶୁଗଣ ପ୍ରଫୁଲ୍ଲ-ବଦନ
ପ୍ରଫୁଲ୍ଲ-ବଦନା ଯହିଁ କୁଳ ନାରୀଗଣ
ପଶୁ ପକ୍ଷୀଗଣ ଯଥା ପ୍ରମୋଦିତ ମନ
ସତତ ଶ୍ରୀହରି ତହିଁ କରନ୍ତି ରମଣ । ୬

ଶୁଦ୍ଧାନ୍ନଂ ଗୃହିଣୀ ଦତ୍ତଂ ଭୁଞ୍ଜତେ ସର୍ବ ଜନ୍ତବଃ ।
ପ୍ରୀତ୍ୟା ଯସ୍ୟ ଗୃହେ ନିତ୍ୟଂ ତତ୍ରୈବ ରମତେ ହରିଃ । ୭

ଯେଗୃହେ ଗୃହସ୍ଥ କର୍ତ୍ତା ଭକ୍ତିପୂର୍ଣ୍ଣ ମନେ
ଅନ୍ନଦାନ-ମହାଦାନ କରେ ଷବଗଣେ
ସକଳେ ଅନନ୍ଦେ ଯହିଁ କରନ୍ତି ଅହାର
ସେଗୃହେ ଶ୍ରୀହରି ସଦା କରନ୍ତି ବିହାର । ୭ ।

ଯତ୍ର ଭୃତ୍ୟୋ ଽ ସ୍ନୁକ୍ଷବାନାମିତ କାର୍ଯ୍ୟଂ ପ୍ରବର୍ତ୍ତତେ
ଯତ୍ରାନନ୍ଦରବୋଗେହେ ତର୍ଦ୍ଦୈବ ରମତେହରିଃ । ୮ ।

"ଅହା ହୋଇଲ ମୁ ଭୃତ୍ୟ" ଏଆନନ୍ଦରବେ
ଯେଗୃହ କରନ୍ତି ପୂର୍ତ୍ତି ମାନବାଦ ଜବେ ।
ଅବର ଶାନ୍ତିର ସ୍ଥାନ ଧନ୍ୟସେ ଭବନ
କାର୍ଯ୍ୟ ବସ୍ତ୍ରକନ୍ତ୍ର ତହିଁ ଶ୍ରୀମଧୁସୂଦନ । ୮ ।

ଅଦ୍ବୈତ ଭକ୍ତିସୂତ୍ରେଣ ବଦ୍ଧାଯତ୍ର ଗୃହେଜନାଃ
ସର୍ବ୍ବେ ଽ ଭିନ୍ନମନାଃ ପ୍ରାଣାସ୍ତତ୍ରୈବ ରମତେହରିଃ । ୯

ପତିପତ୍ନୀ ପୁତ୍ର ଭୃତ୍ୟ ଆଦି ପରିଜନେ
ଅଦ୍ବୈତ ଭକ୍ତିସୂତ୍ରେ ବନ୍ଧଯେ ଭବନେ ।
ସମସ୍ତଙ୍କ ମନ ଏକ ଏକୁ ଅଟେ ପ୍ରାଣ
ଶ୍ରୀହରି କରନ୍ତି ତଥା କାର୍ଯ୍ୟ ଅଧିଷ୍ଠାନ । ୯

ଯତ୍ର କାର୍ଲପ୍ରସଙ୍ଗେନ ସଂସାରେ ବର୍ତ୍ତତେ ଗୃହୀ
ଧର୍ମ୍ମଂ ଚରତି କାଷ୍ଠାମଂ ତତ୍ରୈବ ରମତେ ହରିଃ । ୧୦

କାର୍ଲପ୍ରସଙ୍ଗେ ସଂସାରେ ଯେଉଁ ଗୃହୀଜନ
ଧର୍ମ୍ମକାର୍ଯ୍ୟେ କରୁଥାଏ ସମୟ ଯାପନ ।

ଧର୍ମ୍ମଧାମେ ଏବମ୍ଭାବ ଧନ୍ୟ ତା ସଦନ
ନିତ୍ୟ ବସନ୍ତି ତହିଁ ଦେବନାରାୟଣ । ୧୦
ଗୃହିଣ୍ୟପହୃତାଖିଲ - କ୍ଲେଶାନ୍ ଲୀଲୟା ସହତେ ସ୍ୱୟଂ
ହରଧ୍ୟାର୍ପିତ ସନ୍ତାପଂ ତତ୍ରୈବ ରମତେହରିଃ । ୧୧ ।
ଅଶେଷ କ୍ଲେଶର ଭାର ଗୃହିଣୀ ଯେ ସଦନେ
ଅଗ୍ରହେ କରଇ ସହ୍ୟ ଅମ୍ଳାନବଦନେ ।
ପ୍ରାଣପଣେ ଅର୍ପିତର ହରେ ଦୁଃଖଭାର
ନିତ୍ୟତହିଁ ନାରାୟଣ କରନ୍ତି ବିହାର । ୧୧ ।
ପରିଶ୍ରମୋ ନିତାନ୍ତଂ ଯତ୍ରଧର୍ମ୍ମେଣ ଜୀବିକା
ଦେବାତିଥି ଗୁରୁଶ୍ରଦ୍ଧା ତତ୍ରୈବ ରମତେହରିଃ । ୧୨
ଧର୍ମ୍ମପଥେ ଅପୂ ପରିଶ୍ରମ ନିତାନ୍ତର
ଦେବତା ଅତିଥି ଗୁରୁପୂଜା ଯହିଁ ସାର ।
ପରମ ପବିତ୍ର ସେହି ଗୃହସ୍ଥ ଭବନ
ନିତ୍ୟ ବସନ୍ତି ତହିଁ ଦେବ ନାରାୟଣ । ୧୨
ପ୍ରସନ୍ନ ଲଲିତା ଯତ୍ର ଧେନବୋ ନିତ୍ୟ ଦୁଗ୍ଧଦାଃ
ସୁପୁଷ୍ପ ଫଳଦା ବୃକ୍ଷାସ୍ତତ୍ରୈବ ରମତେହରିଃ । ୧୩ ।
ଯତନେ ଲାଳିତହୋଇ ଯହିଁ ଧେନୁଗଣ
ସୁଧାସମ କ୍ଷୀରଧାରା କରନ୍ତି ବର୍ଷଣ ।
ଫଳପୁଷ୍ପ ସୁଶୋଭିତ ଯହିଁ ତରୁଗଣ
ସେ ଗୃହେ ସତତ ହରି କରନ୍ତି ରମଣ । ୧୩

ସୁସଂସ୍କୃତେ ସୁସଂମୃଷ୍ଟେ ଯଦ୍‌ଗୃହେ ସର୍ବ୍ବତଃ ଶୁଚୌ
ବିଶୁଦ୍ଧାନ୍ୟନ୍ନ ପାନାନି ତସ୍ମିନ୍ନେବ ରମତେ ହରିଃ । ୧୪ ।

ପରିଷ୍କୃତ ପରିଛନ୍ନ ହୁଏ ଯେ ଭବନ
ପବିତ୍ର ପାନୀୟ ଶଯ୍ୟା ଅଶନ ବସନ ।
ଯହିଁ ନାମ ଗନ୍ଧ ନାହିଁ ଅଶୁଚି ଦ୍ରବ୍ୟର
ବିରାଜନ୍ତି ସେହିସ୍ଥାନେ ପ୍ରଭୁ ଚକ୍ରଧର । ୧୪ ।

ସର୍ବ୍ବଂ ଯଦନ୍ନ ପାନାଦି ଗୃହୀ ହ୍ରଷ୍ଟୁଂ ନିବେଦିତଂ
ପରିବାରୈର୍ବୁର୍ଭୋଭୁକ୍ତେ ତସ୍ମିନ୍ନେବ ରମତେ ହରିଃ । ୧୫ ।

ଅନ୍ନପେୟ ଆଦି ଦ୍ରବ୍ୟ ଗୃହୀ ଯେ ଭବନେ
ଭକ୍ତିଭାବେ ନିବେଦନ କରେ ନାରାୟଣେ ।
ପଶ୍ଚାତ ସକଳେ ମିଳି କରନ୍ତି ଆହାର
ସେ ଗୃହେ ଶ୍ରୀହରି ସଦା କରନ୍ତି ବିହାର । ୧୫ ।

ଗୃହେ ମହତି ତୁଚ୍ଛେ ବା ମମତା ଯସ୍ୟ ଗେହିନଃ
ନୈବାତ୍ମନ୍ୟପି ପରଜ୍ଞାନଂ ତସ୍ମିନ୍ନେବ ରମତେ ହରିଃ । ୧୬ ।

ଗୃହୀ ଯଥା ବିଦ୍ୟମାନ ନଶ୍ବର ବସ୍ତୁର
ସମସ୍ତଙ୍କୁ ସମଭାବେ ଭାବେ ଆପଣାର ।
ଆତ୍ମପର ଭେଦଜ୍ଞାନ ନାହିଁ ଯେ ସଦନ
କରନ୍ତି ବିହାର ତହିଁ ପ୍ରଭୁ ନାରାୟଣ । ୧୬

ଶାକାନ୍ନଂ ଧର୍ମ୍ମତୋଲବ୍ଧଂ ସ୍ନେହଯୁକ୍ତ ସ୍ବଜନାତିଥୀନ୍
ଶେଷଂ ଯଦି ବୁଭୁଙ୍କ୍ତେ ତସ୍ମୈବ ରମତେ ହରିଃ । ୧୭ ।

ଧର୍ମ୍ମ ପଥେ ଯାଉଅନ୍ତି କରୁ ଅଲୋଚନ
ଭୋଜନ କରାଏ ଅଗ୍ରେ ଅତିଥି ସ୍ୱଜନ ।
ଯେଉଁ ଗୃହେ ଶେଷାନ୍ନ ଗୃହୀ କରଇ ଭୋଜନ
ବିରାଜନ୍ତି ସେହି ଗୃହେ ଦେବ ନାରାୟଣ । ୧୭

ଧେନୁର୍ଦ୍ଧାନ୍ୟଂ ପୁଷ୍କରଣୀ ଯତ୍ରାବନ୍ଧ୍ୟାଶ୍ଚ ପାଦପାଃ
ଅତିଥିଂ ଦମ୍ପତିପ୍ରେମ ତତ୍ରୈବ ରମତେ ହରିଃ । ୧୮.

ଧାନ୍ୟ ଯଥା ସୁସଞ୍ଚିତ ବୃକ୍ଷ ଫଳବାନ
ସ୍ୱଚ୍ଛ ଜଳାଶୟ ଧେନୁ ଦୁଗ୍ଧ କରେ ଦାନ ।
ଯେ ଗୃହେ ଦମ୍ପତି ପ୍ରେମ ଅତିଥି ସତ୍କାର
ନିତ୍ୟ ତଥା ନାରାୟଣ କରନ୍ତି ବିହାର । ୧୮

ଅବ୍ରହ୍ମ ସ୍ତମ୍ବପର୍ଯ୍ୟନ୍ତ ଜଗତ୍ସନ୍ତର୍ପଣଃ ସଦା
ପ୍ରବର୍ତ୍ତତେ ଯତ୍ର ଯଜ୍ଞସ୍ତତ୍ରୈବ ରମତେ ହରିଃ । ୧୯

ବ୍ରହ୍ମଠାରୁ ପରମାଣୁ ଯାଏ ସବୁଙ୍କର
ତୃପ୍ତିର ଉଦ୍ଦେଶ୍ୟେ ଗୃହେ ନିତ୍ୟ ଯଜ୍ଞ ଯାର ।
ସର୍ବ୍ବଯଜ୍ଞେଶ୍ୱର ହରି ଭବନେ ତାହାର
ସତତ ପରମାନନ୍ଦେ କରନ୍ତି ବିହାର । ୧୯

ବସୁନ୍ଧରେବ ଗୃହିଣୀ ଯତ୍ର ସର୍ବ୍ବଂସହା ଗୃହେ
ସୁଖେ ଦୁଃଖେ ନିର୍ବ୍ବିକାରା ତତ୍ରୈବ ରମତେ ହରିଃ । ୨୦

ସୁଖେ ଦୁଃଖେ ନିର୍ବ୍ବିକାରା ଗୃହିଣୀ ଯେସ୍ଥାନ
ସବୁ ସହ୍ୟ କରଇବେ ଧରଣୀ ସମାନ ।

ଗୃହସ୍ଥ ଆଶ୍ରମ ସେହି ଆଶ୍ରମର ସାର
ଗୋଲୋକ-ବିହାରୀ ତଥା କରନ୍ତି ବିହାର । ୧୦

ଗୃହସ୍ଥା ସ୍ୱର୍ଯ୍ୟେ ଯସ୍ୟ ସର୍ବକାର୍ଯ୍ୟେଷୁ ମାଧବଃ
ସମାହୃତେନ ଶ୍ରୁତନା ତସ୍ୟୈବ ରମତେ ହରିଃ । ୧୨

ଅତଏବ ପବନ୍ଧ ଯେଉଁ ଗୃହୀ କାର୍ଯ୍ୟଚୟ
ହଉପବେ ସମାହୃତ ଯାହାର ହୃଦୟ ;
ସର୍ବକାର୍ଯ୍ୟେ କରେ ଯେହୁ ଶ୍ରୀହରିସ୍ମରଣ
ତା ସଦନେ ବସନ୍ତି ପ୍ରଭୁହାସ୍ୟପୂର୍ଣ । ୧୨

ପୁଣ୍ୟେ ତପୋବନେବାପି ଚଣ୍ଡାଲ ଭବନେଽଥବା
ଯସ୍ୟୈବା କାହ୍ୟତେଭକ୍ତ୍ୟାତସ୍ୟୈବରମତେହରିଃ । ୧୧

ଭୃଗୁକାୟୁ ମହର୍ଷିଙ୍କ ପୁଣ୍ୟ ତପୋବନ
ଅଥବା ଘୃଣିତ ଅତି ଚଣ୍ଡାଲ ଭବନ ।
ଯେବାଯହିଁ ଭକ୍ତିଭାବେ କରେ ଆବାହନ
ଭଗବାନ୍ତ ସେହିସ୍ଥାନେ ବୈକୁଣ୍ଠ ରମଣ । ୧୩

କ୍ଷୁଧାର୍ତେଽନ୍ନଂତୃଷାର୍ତେଽମ୍ବୁଶୋକାର୍ତେ ଯନ୍ନସାନ୍ତ୍ୱନା
ଲଭ୍ୟତେଽବଶ୍ୟଂଚଲଭତେ ତସ୍ୟୈବ ରମତେହରିଃ । ୧୩

କ୍ଷୁଧାର୍ତ ତୃଷାର୍ତ ଯଥା ଲଭେ ଅନ୍ନପାନ
ଶୋକାର୍ତ୍ତିର ହୁଏ ଯହିଁ ଶୋକର ନିର୍ବାଣ ।
ଯେ ଗୃହେ ଦୟାର୍ଦ୍ରଭାବ ଲଭଇଅବଶ୍ୟ
ନିତ୍ୟ ଭଗବାନ୍ତ ତହିଁ ହରିଦୟାମୟ । ୧୩

ଗିରେନୈବ ବୃକ୍ଷେଣୈ କୁର୍ବନ୍ତ୍ୟ ଛୈରପି କ୍ରିୟାଃ
ତୃଷ୍ଣୀଯନ୍ତ ସଦାନନ୍ଦସ୍ତ୍ରଚ୍ଛନ୍ଦୈବ୍ୟଗମନ୍ତେ ବିଭୁଃ । ୧୪

ଯେବ୍ରହ୍ମେ ଚୃହସ୍ତ କାର୍ଯ୍ୟ କରେ ସୁମହତ
ତଥାପି ସର୍ବସମୀପେ ଶୀତଳରେ ନତ ।
ନଜାଣଇ ଅନ୍ୟମାନଙ୍କ ସଦାନନ୍ଦ ମତ
ହସ୍ତଜନ୍ତୁ ସେ ଭବନେ ଜନଲାଭ ପଥ । ୧୪

ସମାପ୍ତ ।

---